# ଶ୍ରୀ ମହାଦେବଜଣାଣ।

ଚଉତ୍ରିଂଶା

ସମ୍ବଲପୁର ନିବାସୀ

ଶ୍ରୀ ବାବୁ ଭଗବାନ୍‌ଚନ୍ଦ୍ର ପଟ୍ଟନାୟକ

ଓ

ଶ୍ରୀ ବାବୁ ଗୋକୁଳେଶ୍ୱର ବନ୍ଧଦାରଙ୍କ

ଦ୍ୱାରା

ବାମଣ୍ଡା ଜଗନ୍ନାଥବଲ୍ଲଭ ପ୍ରେସ୍‌ରେ

ପ୍ରଥମବାର

ମୁଦ୍ରିତହେଲା

୧୮୯୧ ଖ୍ରୀଷ୍ଟାବ୍ଦ

ମୂଲ୍ୟ ୬୦ ୯ ମାତ୍ର

# ଶ୍ରୀ ମହାଦେବଜଣାଣ ।

---

ରାଗ ରାମକେରୀ ।

କହଇ କେହୁ ଦୁଃଖୀଜନ ଶ୍ରୀବାଲୁଙ୍କେଶ୍ୱରଙ୍କୁ ।
କପାଇଁ ମୋଠାରେ ଛପାଇଦେଲ କୃପାସିନ୍ଧୁ ।
କରୁଣା ସାଗର ହୋଇଣ ଶୋକସାଗରେ ମୋତେ ।
କପାଇଁ ଡୁବାଇଦେଉଛ ନଷ୍ଟେ ନିଷ୍ଠୁରଭାବେ । ୧ ।
ଖଣ୍ଡାପଣେ କାଳଦେବତା କରେ ଖଡଗଧର ।
ଖଣ୍ଡ ଖଣ୍ଡ କରିଦେଉଛି ଦମ୍ଭ ଦୁମଙ୍କୁ ମାରି ।
ଖଞ୍ଜରି ବାଜୁଛି ସଂସାରେ ଖଞ୍ଜୋ ଥାଉଣବୋଲି ।
ଖରତରହୋଇ ଦୂରତ ନାଶକର ତ୍ରେଶୂଳି । ୨ ।
ଗୌରବକରି ରହିଅଛି ଦେହେ ଯେତେ ଦୁଷ୍କୃତ ।
ଗଣନାକରି ନପାରିଲେ ସୋମନାଥ ପଣ୍ଡିତ ।
ଗରଳ ସମାନେ ହପତି ଏମୋ ଦେହେ ଘାରିଲୁ ।

ଗରିଷ୍ଠ ଉପାସ୍ୟନକଲେ ପ୍ରଭୁ ବାଞ୍ଛାଗୁଡ଼ଲ । ୩ ।
ଘଡ଼ ଘଡ଼ ଗୁମ୍ଫନାମଙ୍କୁ ଘୋଷୁଥିବ ମୁଁ ବସି ।
ଘୃଣ ଯେଉଁରୂପେ ନୋହିବ କର ହେକାଶିବାସୀ ।
ଘୋଟିଅସୁଅଛୁ ବିପତ୍ତି ଘନ – କୁହୁଡ଼ପରି ।
ଘୁଞ୍ଚାଇ ଦିଅନ୍ତି କରୁଣା ସୂର୍ଯ୍ୟ ପ୍ରକାଶକରି । ୪ ।
ନାଶକଲ ଭଉବଲ୍ଲଭ ନୟନ ତୃଷ୍ଣପୂରେ ।
ନାଚୃଣ ନକର ଶରଣ ପଶୁଛୁଁ ଚରଣରେ ।
ନିରନ୍ତରେ କଳ୍ପଦ୍ରୁମକୁ ଆଶ କଲଉତ୍ତାରେ ।
ନିହୁଅଛୁ ସୁଖସମ୍ପତ୍ତି ତାହହେଲ୍କ ଏଠାରେ । ୫ ।
ଚୂରିପକାଉଛୁ ଏଦେହ ଚାନ୍ତାହୋଇ କଳାଷ୍ଟ ।
ଚାନ୍ତୁତ ହେଲକ ଭେଦେବ ଦେଖି ଦୂଃଖଗର୍ଷ୍ଠୁ ।
ଚଞ୍ଚଳହୋଇ ମୋକ୍ଷପତ୍ତି ବ୍ୟାଘ୍ରରୂପେ ଛଗିଛୁ ।
ଚଗ୍ଭଣ ମନବୃଷଭ ନଧେ ଚୂବାନ୍ତୁଅଛୁ । ୬ ।
ଛନ୍ଦନ୍ତି ଚରଣଯୁଗଳେ ମାୟାଶାଙ୍କୁଳୀ ମୋର ।
ଛିଣ୍ଡାଇଦିଅ ତ୍ରିଶୂଳରେ ବାରେ ପାର୍ବତୀବର ।
ଛିନ୍ନଭିନ୍ନ କରିଦେଉଛି ଏମୋଦୁଃଖ ସମ୍ପତ୍ତି ।
ଛାର ପରଭୂମ୍ୟ ମନରେ ନବଚୁର ଏଭିଛ । ୭
ଜଗତେ ବୋଲନ୍ତି ଅଭୟ ବରଦାତାପଣରେ ।
ଜଣେକେହୁସମ ନୋହିବେ ବୋଲଭାଷନ୍ତିସୁରେ ।

ଜନମକାଳରୁ ନଜାଣେ ଜଗନ୍ନାଥ ବାହାରେ ।
ଜନ୍ମହୋଇ ଯଦ୍ ଏଦେହେ ଜପି ଭୂମ୍ଭନାମରେ । ୮
ଝଡ଼ଯାଉଅଛୁ ଏଦେହ ଚମ୍ପା ପବନ ପଶି ।
ଝାଳଗଲାପର ପରତେ ଝେଉଛୁ ଦବାନଶୀ ।
ଝର ଝର ବେନ ନୟନୁ ବହେ ଲୋତକଧାର ।
ଝିମଟେ ପାସୁର ନଯାଏ ମୋର ଦୁଃଖର ଭାର । ୯
ଞାଉର ବ୍ରହ୍ମାଙ୍କୁ ଜନମ କର ଥିଲେ ଶ୍ରୀଧର ।
ଞମନ୍ତେ ସ୍ୱକୃତ ପାପରେ ତାଙ୍କୁ ବିମୁକ୍ତ କର ।
ଞଗିତ ହୋଇ ପାପାସୁର ଅକ୍ରମଣ କରଇ ।
ଞଷ୍ଟପ୍ରେ ଏଜୀବ ମାରବ ସାହା କେବା ଅଛଇ । ୧୦
ଟଙ୍କାରଣ ଧନୁର୍ଗୁଣରେ ଶୀଘ୍ର ବାଣବସାଇ ।
ଟାଣକର ବନ୍ଧନଦେଲେ ଟେକଯିବ ଗୋସାଇଁ ।
ଟାକଅଛୁଁ ଟୋକା କାଳରୁ ଟାଳମୋତେ ନଦିଅ ।
ଟିକାଏ କରୁଣା ଅପାଙ୍ଗ ମତେ ପକାଉ ଥାଅ । ୧୧
ଠୁଳହୋଇ ସର୍ବ ଦେବତା ମାନେ ଭାଷନ୍ତି ସ୍ୱଚ୍ଛ ।
ଠିକାଏ ଦୂରତ ନାଶନ ବାନା ପଣ ବହୁଛି ।
ଠିକଣା କରମୁ କହୁଛୁଁ କର୍ଣ୍ଣଡେରଣ ଶୁଣ ।
ଠାବ ଠଙ୍କଧର ନଦେଲେ ନଷ୍ଟେଯିବଏ ପ୍ରାଣ । ୧୨
ଡଗ୍ରହଣ କାଳଦେବତା କେଶଧର ଡର୍ଜୁଛି ।

ତମ୍ବୁରୁଧର ମୋ ଭରସା ତାଙ୍କଦେଇ କହନ୍ତି ।
ତଂତ୍ରି ଦଅନ୍ତି ପଲାଉ ଢର ଧରଣ ତାର ।
ତେଙ୍ଗର୍ ଗୁଡ଼ିକ ଜଗତେ ଯେବେଯିବ ଏ କାଳ । ୧୩
ଢେଙ୍କିପର ଏମୋହତରେ ଲୁଟି ଦଏ ଚମକ ।
ଢମନୋହେ ସନ୍ତ୍ୟକହନ୍ତି ମୁହିଁ ଅରକ୍ଷଲୋକ ।
ଢାଲଦଅ କୃପାଅମୃତ ପ୍ରାଣ ନଷ୍ଟ ତ ପାଉ ।
ଢାଳେଦରଦୂର ବାନାଙ୍କୁ ଉଡାଇ ନିଅଯାଉ । ୧୪
ଅକ୍ଷାନ୍ଧୂଷ ଲୋକଭକ୍ତଲେ ପୂର୍ଣ୍ଣାପ୍ଲୁଷଙ୍କୁ ଦଅ ।
ଅନନ୍ତ ମହିମାଥାଉଁ ମୋଠାରେ ନଦିଯ୍ୟାନ୍ତୁଅ ।
ଅକାରଣେ ନାଶଯାଉଛନ୍ତି ପ୍ରଦ୍ଭୁନଚନ୍ଦ୍ରି ବାରେ ।
ଅବଲମ୍ବେ କହିବାକୁ କଉମା ନାହିଁ ପାଶରେ । ୧୫
ଡଲେବେଁ ଅନ୍ତରନୋହିଲାଚନ୍ତା ବ୍ୟାଧିଦେହର୍ ।
ବିଲୋଚନ ଥାଉଁ ଥାଉଁ ମୋ ଜୀବଯିବ ସଂସାର୍ ।
ଡଗ୍ଧରେ କଣାଣ କରନ୍ତି ଶୁଣପାବଂଜୀ–ଧବ ।
ଭୂରତେ ଅଭୟ ନଦେଲେ ନେବସେ ଜୀବଧବ । ୧୬
ଥରଥର ହୋଇପଡ଼ୁଛୁ ଡାଲେ ବପଣ୍ଡି ମୋତେ ।
ଦୀନଦେଲ କୃପା ଦରଣ ଲୀଳ ହେବଟ୍ଟିନାଥେ ।
ଥନ୍ଦୁହେଉନାହିଁ ମୋଦେହ ବଲାନାହିଁ ଅଙ୍ଗରେ ।
ଥରେ କରୁଣାକୁ ନକଲେ ନଦାହେବସଂସାରେ । ୧୭

ଦୀନବନ୍ଧୁ ରାମନାମକୁ କରନ୍ତି ଜପାମାଳ ।
ଦାନକର ଚତୁର୍ବର୍ଗକୁ ନଦେଲେନ୍ତି ଭାସିଲ ।
ଦାନବ ତ୍ରିପୁର ନାଶିଲ ଦଗମ୍ବର ହୋଇଣ ।
ଦେଖିଣ ଅଦ୍ଭୁତ ଦେବତା ଗଣ ଯାନ୍ତୁଶରଣ । ୧୮
ଧନଞ୍ଜୟ ନେତ୍ରସିଦ୍ଧିରେ ପଞ୍ଚଶର ଦହିଲ ।
ଧ୍ୱରକର ଅରେ ରହିଁଲେ ଛଳଯିବ ଏକାଳ ।
ଧ୍ୟାନକର ଥିଲା ଭୃତ୍ୟର ଯେବେ ବିପତ୍ତି ଯିବ ।
ଧରଣୀରେ ରାମନାମରେ ଯଶବାନା ଉଡବ । ୧୯
ନରାଣ ନକର ମୋଠାରେ ନଭେଦ ସଦୟ ହୁଅ ।
ନିଶାପତିଙ୍କର ପତ୍ୱେ ପ୍ରଭୁ ନିଦୟା ନୁହ ।
ନୀଳକଣ୍ଠ ହୋଇ ରହିଲ ପାନକର ଗରଳ ।
ନରକରେ ଥରେ ସ୍ଥିର ନୁହଇ ଯେଦେହଜଳ । ୨୦
ପତିତପାବନ ବାନାକୁ ଏବେ କରବିସ୍ତାର ।
ପଶିନପାରୁ ଏ ସଙ୍କଟ ପୁଣ ପ୍ରାଏକ କର ।
ପ୍ରୀତିବନ୍ତ ହେଲ ଶଙ୍କର ଯେବେ ନଯିବ ଅଙ୍ଗୁ ।
ପୁରୁଣା ହୋଇଣ ରହିଲେ ନଷ୍ଟେ କରିବ ପଙ୍ଗୁ । ୨୧ ।
ଫୁଟିଣ ବାହାରହେବାକୁ ଫୁଟୁଅଛୁ ହୃଦୟେ ।
ଫଣିପ୍ରାୟହୋଇ ଫୁତ୍କାର କରେ ଅତିନିଦ୍ଦୟେ ।
ଫୁରୁଣାରେ ବସ୍ତୁରଥକୁ ଶବକର ଏଥର ।

ଫାଙ୍କଦେଲ ପ୍ରାଏ କରିଣ ଢାଳଦେବ ଝଙ୍କର । ୧୨ ।
ବେଦ ଯା ଗତିକୁ ନଜାଣେ ବେଦ ପଢିବାକାହିଁ ।
ବାମଦେବ ଋଷି ତଣ୍ଡ୍ରୀଙ୍କ ନପାରିଲେ ବୁଝିଇ ।
ଖାଇବର ବଧି ସିଦ୍ଧିଙ୍କ ନସୂଦନା ନକଲେ ।
କଲବନ୍ତ୍ରବାଧି ରହିବ ନଶ୍ଚେଁ ନଯିବଭଲେ । ୧୩ ।
ଭାବନା କରଇ ଯେବଣଜନ ତୁମ୍ଭପସ୍ତରେ ।
ଭବଭୃତବାଧି ନଲାଗେ କହିଅଛି ବେଦରେ ।
ଭସ୍ମୁଗ୍ରି ଅଙ୍ଗେ ବୋଲିଲେ ସର୍ବବ୍ୟାଧି ନାଶଇ
ଭସ୍ମାସୁରେ ବରପ୍ରଦାନ କଲ ଜାଣିଅଛଇଁ । ୧୪ ।
ମନରସମାନ ମହିମା ଝୁଲିନଯାଏ ପୁଣ ।
ମୁନିମାନେ ମନଦେଇଣ ସେବୁ ଛନ୍ତି ଚରଣ ।
ମାୟାମୋହ ପାଶ ଛନ୍ଦନ୍ତି ପ୍ରଭୁ ମୋଚରଣରେ ।
ମାନଧାତାହେ ଛିଣ୍ଡାଇଣଦିଅ ଅଶିପଦରେ । ୧୫ ।
ଯାନ୍ତ୍ରପଙ୍କାଉଛି ଦେହକୁ ରନ୍ଧ୍ରା ବ୍ୟାଧି ସନ୍ତତେ ।
ଯମ ଦେବତାଙ୍କ କଷଣ ନହୁଅନ୍ତି ଏତେ ।
ଯହେ ତୁମ୍ଭ ମହାବଳଙ୍କ ଜପୁଥିବଇ ପାଣ ।
ଯଶବଧୂ ମହୀମଣ୍ଡଳେ ନଶ୍ଚେ କରପ୍ରକାଶ । ୧୬ ।
ଗ୍ରମଗ୍ରହା ଗ୍ରମବରୁଣ ବାଣ କୁବେର ଦେଲେ ।
ସକାଧିଗ୍ରହଙ୍କ ଇଶ୍ୱର ମୋରେ ନିଦ୍ୟ କଲେ ।

ରଣରଣ କରଦେଉଛୁ ରକ୍ଷା କରତା ନାହିଁ ।
ରହସ୍ୟେଚନ୍ଦ୍ରା ନ ଜାଗିଲେ ପ୍ରାଣରହିବ କାହିଁ । ୧୭ ।
ଲମ୍ଫଦେଇ କଣ୍ଠିତେରଛୁଁ ମୋତେ ଏଅଣ୍ଡାହେବ ।
ଲେଖିଥିବାଯାଏ ଲଲାଟପଟେ ଲିପି ରହିବ ।
ଲକ୍ଷ ଲକ୍ଷ ବର ଲଭନ୍ତି ଦେଖେଁଧୀର ମଣ୍ଡଳେ ।
ଲାଜପାଇ ମୋର ଦୁଃଖକୁ ନାଶ ନକଲ ହେଲେ । ୧୮
ବିଶ୍ୱାସ କରଛୁଁ ପଙ୍କଜ ପାଦ-ହୃଦରେ ଧ୍ୟାୟି ।
ବିନାଶ କରନ୍ତ ସଙ୍କଟଚନ୍ଦ୍ରା ବ୍ୟାଧି ଗୋସାଇଁ ।
ବିଶ୍ୱାସ କର ଜଣାଇଲେ ବିଷଘାତେ ନଗୁଣ ।
ବଳନାହିଁ ଏବେ ଅଙ୍ଗରେ ଶୁଣ ଉମାରମଣ । ୧୯ ।
ଶର୍ପଣ ମୋତେ ନକର ଛିନ୍ନ ହୋଇ ଯାଉଛୁ ।
ଶୟନ ଭୋଜନ ସମୟେ ସୁଖ ନାହିଁନା କିଛି ।
ଶରଣ ରକ୍ଷଣ ବାନାକୁ ରଖିଲେ ଉଡାଅ ।
ଶଙ୍କରେଶୁଣି ମୋ ଗୁହାରି ବାରେ ସଦୟହୃଅ । ୨୦
ଷଡ଼ାନନ ତାତ ପ୍ରଭୁହେ ଶୁଣମୋର ଗୁହାରି ।
ଷଡ଼ ଅର୍ଦ୍ଧପୁରେ ଦେଖତ ଦୁଃଖୀ କେବାମୋପରି ।
ଷୋଡ଼ଶୋପ ଚାରେ ପୂଜାମୁଁ କରି ତବ ପଦାବ୍ଜେ ।
ଷଟ୍ପଦ ମୋହର ମାନସ ହୋଇନଥିବ ରେଭଜେ । ୨୧ ।
ସିଦ୍ଧାନ୍ତବାଣୀ ମୁଁ କହୁଛୁ ସର୍ବଦାଏ ନିଶ୍ଚୟ ।

ସୁଦୟା କରଣ ମୋଠାରୁ ଶୁଣି ସର୍ବ ବିଷୟ ।
ସାରକର ବାଞ୍ଛା ଧରଛି ମୋରେ ନୁହ ବିମୁଖ ।
ସାନ ବଡ ନାହିଁ ବର୍ଗର ମାରଦେଉଛି ଦୁଃଖ । ୩୨ ।
ହୁତାଶନରୂପେ ଦେହକୁ ଚିନ୍ତା ବ୍ୟାଧି ଦହୁଛି ।
ହରଣଧନ ! କି ? ନଜାଣ ଦେହ ଚୂର୍ଣ୍ଣ କରୁଛି ।
ହରିଣ ମୋଠାରେ ନଯାଅ ଉସ୍ନାଙ୍କୁ ହୋଇଣ ।
ହାସ୍ୟ କରିବେଟି ସମସ୍ତେ ନିଷ୍ଠୁରେ ଶୁଣିଣ । ୩୩ ।
କ୍ଷଣକ୍ଷଣକରେ ମୋହର ବୁଡ଼ ଯାଉଛି ଜ୍ଞାନ ।
କ୍ଷୀଣଅସି ଦେହ ହୋଇଲା ମାନ ଅଛି ପବନ ।
କ୍ଷାଳନକରୁଛି ମୋଦେହ ଚିନ୍ତାଜଳେ ଗୋସାଇଁ ।
କ୍ଷମାନକଲେ ମୁଁ ଦୁଃଖରୁ ପାରହେବାର ନାହିଁ । ୩୪ ।



ଆମ୍ଭ ଲେଖିତ ପୁସ୍ତକମାନ ସମ୍ବଲପୁର ମହାନ୍ତିପଡ଼ା ଅମ୍ଭ ଦୋକାନରେ ବିକ୍ରୟ ହେଉଅଛି ।

ଶ୍ରୀଲକ୍ଷ୍ମୀ ଓ ଜଗନ୍ନାଥଙ୍କର ବଚନିକା ଏବଂ ଭଜନସାର } ମୂ ୧ ୬୦/

ଶ୍ରୀ ମହାଦେବ ଜଣାଣ ... ... ... ମୂ ୧ ୬୦/୯

ଅହଲ୍ୟା ସ୍ତୁତି ଏବଂ ଗ୍ରହସ୍ତବ ... ... ମୂ ୧ ୬୦/୯

କ୍ଷମାନିଧି ଜଣାଣ ... ... ... ... ମୂ ୧ ୬୦/

ଯେଉଁମାନଙ୍କର କୌଣସି ବିଷୟର ଉତ୍ତର ପାଇବାର ଇଚ୍ଛା ଥାଏ ସେମାନେ ଦୁଇପଇସିଆ ଟିକଟ ବା ରିପ୍ଲାଇ କାର୍ଡ ନପଠାଇଲେ ଉତ୍ତର ପାଇ ପାରିବେ ନାହିଁ ।

ଶ୍ରୀ ବାବୁ ଭଗବାନଚନ୍ଦ୍ର ପଟ୍ଟନାୟକ